# ବ୍ରହ୍ମେଶ୍ୱର ଶିଳାଲିପି

ଏକାମ୍ର କ୍ଷେତ୍ର ନିବାସୀ

ପଣ୍ଡିତ ଶ୍ରୀରତ୍ନାକର ଗର୍ଗବଟୁଙ୍କ ଦ୍ୱାରା

ସଙ୍ଗୃହୀତ ଓ ସୁବୋଧିନୀ ଟୀକାସହ

ପ୍ରଥମବାର ପ୍ରକାଶିତ ।

ପ୍ରାପ୍ତିସ୍ଥାନ :—

ପଣ୍ଡିତ ଶ୍ରୀ ରତ୍ନାକର ଗର୍ଗବଟୁ

ଭୁବନେଶ୍ୱର

ପୋ: ଭୁବନେଶ୍ୱର, ଜି: ପୁରୀ ।

ମୂଲ୍ୟ ଦୁଇଅଣା ମାତ୍ର ।

# ମୁଖବନ୍ଧ

ଏହି ଭୁବନେଶ୍ୱର ଶିଳାଲିପିକୁ ମେଘେଶ୍ୱର ଶିଳାଲିପି ସହ ୧୮୩୮ ଖ୍ରୀଷ୍ଟାବ୍ଦରେ କିଟୋ ସାହେବ କଲିକତାକୁ ନେଇଥିଲେ । ମନ୍ଦିର କର୍ମଗୃହସ୍ଥ ଭାଣୀ ଅଟିନ ମହାଶୟ ଆପତ୍ତି କରିବାରୁ ମେଘେଶ୍ୱର ଶିଳାଲିପି ଫେରିଆସି ଅନନ୍ତ ବାସୁଦେବଙ୍କ ମନ୍ଦିର ପ୍ରାଚୀର ଦେହରେ ସନ୍ନିବେଶ ହେଲା । ମାତ୍ର ଭୁବନେଶ୍ୱର ଶିଳାଲିପି ଫେରି ନ ଆସି କଲିକତା ମିଉଜିୟମରେ ରହିଲା । ଏହା ଡାକ୍ତର ରାଜେନ୍ଦ୍ରଲାଲ ମିତ୍ରଙ୍କ Antiquities of Orissaରୁ ସଂଗୃହୀତ ହେଲା । ଇତି ।

ପ୍ରକାଶକ ।

# ବ୍ରହ୍ମେଶ୍ୱର ଶିଳାଲିପି

ବ୍ରହ୍ମୋପେନ୍ଦ୍ରମହେଶ୍ୱରେନ୍ଦ୍ର ବଳାଭିରନ୍ତୁ କୃତାଦ୍ୟାସୁରୈ-
ର୍ଭ୍ରାମ୍ୟନ୍ ମନ୍ଦର ପର୍ବତେନ ମଥିତାତ୍ କ୍ଷୀରୋଦଧେର୍ମଧ୍ୟତଃ ।
ଉଦ୍ଭୂତାମୃତକୌମୁଦୀଭିରଖିଳଂ ତ୍ରୈଲୋକ୍ୟମୁଦ୍ୟୋତୟନ୍
ରାଜେନ୍ଦୁଃ ସକଳଃ ସମଗ୍ରବପୁଷଃ ସାର୍ଦ୍ଧଂ ଶ୍ରିୟା ଜାତବାନ୍ ।୧।

ବ୍ରହ୍ମା, ବିଷ୍ଣୁ, ମହାଦେବ, ଇନ୍ଦ୍ର, ବଳି ପ୍ରଭୃତି ଦେବ ଦାନବ ଗଣ ବାସୁକିଙ୍କୁ ରଜ୍ଜୁ କରି ମନ୍ଦର-ପର୍ବତ ଦ୍ୱାରା କ୍ଷୀର ସାଗରକୁ ମନ୍ଥନ କରିବାରୁ ତହିଁ ମଧ୍ୟରୁ ଉଜ୍ଜ୍ୱଳ ଅମୃତ-କୌମୁଦୀଦ୍ୱାରା ସମଗ୍ର ତ୍ରିଭୁବନକୁ ଉଜ୍ଜ୍ୱଳ କରି ପୂର୍ଣ୍ଣଚନ୍ଦ୍ର ଲକ୍ଷ୍ମୀଙ୍କ ସହିତ ଜନ୍ମ-ଗ୍ରହଣ କଲେ । ୧ ।

ତଦ୍ବଂଶେଽଜନି ଶୁଭ୍ରକୀର୍ତ୍ତିରତୁଲୋ ବିଶ୍ୱମ୍ଭରାବଲ୍ଲଭୋ
ରାଜା ଶ୍ରୀ ଜନମେଜୟଃ ସବପ୍ରହାଭୂତେଷୁ ଲଙ୍କାଧିପଃ ।
ଦନ୍ତାଦନ୍ତି କରାକରିଶ୍ରମନିଷ୍ଠ'ତ୍ ଭଗ୍ନେ ରଣେ'ଂଧ୍ରିପେ
ଽଃ କୁନ୍ତାଗ୍ରହତୋତ୍ତ୍ରଦେଶନୃପତେର୍ଲକ୍ଷ୍ମୀଂ ସମାକୃଷ୍ଟବାନ୍ ।୨।

ସେହି ଚନ୍ଦ୍ର ବଂଶରେ ଉଜ୍ଜ୍ୱଳ କୀର୍ତ୍ତିଶାଳୀ ଶ୍ରୀମତ୍ ଜନମେଜୟ ନାମରେ ପୃଥିବୀପତି ରାଜା ଜନ୍ମଗ୍ରହଣ କଲେ । ସେହି ଶତ୍ରୁବିନାଶକାରୀ ରାଜା କୁବେର ତୁଲ୍ୟ ଧନଶାଳୀ ଥିଲେ । ସେ ଯୁଦ୍ଧ କ୍ଷେତ୍ରରେ ଶତ୍ରୁ ପକ୍ଷର ହସ୍ତୀବଳ ଭଗ୍ନ କରି କୁନ୍ତ ପ୍ରହାର ଦ୍ୱାରା ହତ ଉତ୍ତ୍ରଦେଶ ନୃପତିଙ୍କର ରାଜଲକ୍ଷ୍ମୀକୁ ଗ୍ରହଣକଲେ ।୨।

ସମ୍ରାଟ୍ ଭର୍ତ୍ତର ସ୍ତ୍ରଜବ୍ରତପଶୀଧୀଯନ୍ତ ଶଷ୍ତ୍ରନ୍ତୁ ନ୍ତ୍ର-:
ଦିଗ୍‌ଯାତୋ ନୟ୍‌ଶକପାଭୂନ୍ତ ମତଃ ସପ୍ତାଙ୍ଗ ରାଜ୍ୟେଶ୍ୱରଃ ।
ବାଲ୍ୟାଦକ୍ଷତ ବୈଧକର୍ମ ଚରିତସ୍ତ୍ୟାଗୀ ମହାଧାର୍ମିକୋ
ରାଜା ଶୌର୍ଯ୍ୟମୟୋ ଯଯାତିନୃପବତ୍ ଯୋ ମେଦିନୀମଣ୍ଡନଃ ।

ସମ୍ରାଟଶ୍ରେଷ୍ଠ ଜନମେଜୟଙ୍କ ପରେ ତାହାଙ୍କ ପୁତ୍ର ଶୌର୍ଯ୍ୟମୟ ରାଜା ହେଲେ । ସେ ରାଜନୀତ ଶାସ୍ତ୍ର ଓ ବିକ୍ରମାଦିରେ ଅଦ୍ଭୁତ ବୁଦ୍ଧିଶାଳୀ ଏବଂ ସପ୍ତାଙ୍ଗରାଜ୍ୟର ଅଧୀଶ୍ୱର ଥିଲେ । ବାଲ୍ୟ କାଳରୁ ତାଙ୍କର ଧର୍ମରେ ବା ଚରିତରେ କୌଣସି ବାଧା ଘଟି ନ ଥିଲା । ସେ ତ୍ୟାଗୀ ଓ ମହା ଧାର୍ମିକ ହେତୁ ଯଯାତି ନୃପତିଙ୍କ ତୁଲ୍ୟ ପୃଥିବୀକୁ ମଣ୍ଡନ କରୁଥିଲେ । ୩ ।

ତସ୍ୟାନ୍ତେ କଳିକାଳକଲ୍ପବିଟପୀ ଭୂପାଳଚୂଡାମଣି-
ର୍ମର୍ଯ୍ୟାଦାମୃତ ସତ୍ତ୍ୱ ଧୈର୍ଯ୍ୟକମଳା ଗାମ୍ଭୀର୍ଯ୍ୟ ରତ୍ନାକରଃ ।
ମାଙ୍ଗଲ୍ୟାଦ୍ଦଶକ୍ତିଦିଛିବଦ୍ଧରଃ ପ୍ରଖ୍ୟାତକୀର୍ତ୍ତିଃ ସଦା
ରାଜା ଦୀର୍ଘରବୋ ମହାରଥଗୁଣଃ ଶୂରୋବଭୂବାଦ୍ଧହା । ୪ ।

ଶୌର୍ଯ୍ୟମୟଙ୍କ ପରେ ଦୀର୍ଘରବନାମକ ରାଜା ରାଜତ୍ୱ କଲେ । ଉକ୍ତ ରାଜା କଳିକାଳର କଳ୍ପବୃକ୍ଷ ସଦୃଶ ଏବଂ ଭୂପାଳମାନଙ୍କର ମସ୍ତକମଣି ସ୍ୱରୂପ ଥିଲେ । ପୁଣି ମର୍ଯ୍ୟାଦା, ମୋକ୍ଷସାଧନୋପାୟ, ସତ୍ତ୍ୱ, ଧୈର୍ଯ୍ୟ, ଶୋଭା, ଗମ୍ଭୀର୍ଯ୍ୟାଦି ଗୁଣମାନଙ୍କର ସମୁଦ୍ରତୁଲ୍ୟ ଆଧାର ଥିଲେ । ସେ ପୁଣି ମଙ୍ଗଳଦାୟ ଶକ୍ତିର ଦିଙ୍କି ଜାଣି ପାରୁଥିଲେ ଏବଂ ମହାରଥ ଗୁଣରେ ଶତ୍ରୁମାନଙ୍କୁ ହତ କରିବାରୁ ଶୂର ନାମରେ ଖ୍ୟାତ ହୋଇଥିଲେ । ୪ ।

ତସ୍ମାଦଜାୟତ ଚ ବଜ୍ରକଣ୍ଠାର-
ଦୁର୍ଜ୍ଜସ୍ୱନଃ ପରଶୁରାମ ଇବଦ୍ୱିତୀୟଃ ।
ମଧ୍ୟନ୍ଦିନାର୍କ ଇବତୀ ବ୍ରତର ପ୍ରତାପୋ
ରାଜା ବଭୂବ କୃତଧର୍ମ୍ମପରୋପକାରଃ । ୫ ।

ସେହି ଦୀର୍ଘବଜ୍ରକଣ୍ଠାରୁ ଅପରାରନାମକ ରାଜା ଜନ୍ମ ଗ୍ରହଣ କରି ରାଜତ୍ୱ କଲେ । ଏହି ରାଜା ଦ୍ୱିତୀୟ ପରଶୁରାମ ପରି ଗର୍ଜ୍ଜନ କରି ଭୁଜବଳଦ୍ୱାରା ଶତ୍ରୁମାନଙ୍କୁ ଜିଣୁଥିଲେ । ଏହାଙ୍କର ପ୍ରତାପ ମଧ୍ୟାହ୍ନ ସୂର୍ଯ୍ୟପରି ତୀବ୍ରତର ହୋଇଥିଲା । ଅତ୍ର ମଧ୍ୟ ଏ ରାଜା କୃତ ଓ ଧର୍ମପରାୟଣ ଥିଲେ । ୫ ।

ତସ୍ମିନ୍ ଗତେ ଦିବମପ୍ୟୁତ୍ତ୍ରଣି ରାଜମଲ୍ଲେ
ନାନାଭଟୈର୍ନୃପଦ୍ରୁତେ ସକଳେଽପି ରାଷ୍ଟ୍ରେ ।
ଦେଶାନ୍ତରସ୍ଥିତବତୀ ଭଟଜନ ପ୍ରବୀରେ
କାଳଃ କିୟାନଗମଦବ ଯଥା କଥଞ୍ଚିତ୍ । ୬ ।

ସେହି ଅପରାର ରାଜମଲ୍ଲ ଅପ୍ରସିଦ୍ଧ ଅବସ୍ଥାରେ ସ୍ୱର୍ଗଗାମୀ ହେବାରୁ ଶତ୍ରୁମାନେ ତାଙ୍କର ସମସ୍ତ ରାଜ୍ୟ ଧ୍ୱଂସ କରି ଦେଲେ । ରାଜ୍ୟ ଧ୍ୱଂସ ହେବାରୁ ତାହାଙ୍କର ହସ୍ତିଯୂଥ ଓ ବୀରମାନେ ଅନ୍ୟାନ୍ୟ ଦେଶରେ ଆଶ୍ରୟ ନେଲେ । ଏଣୁ ଯଥା କଥଞ୍ଚିତ୍ ରୂପେ କେତେକ କାଳ ଗତ ହୋଇଗଲା ।

ତତ୍ ସ୍ଥାନାଜ୍ଜନମେଜୟସ୍ୟ ତନୟୋ ଭୂତଃ ପ୍ରସିଦ୍ଧଃ କ୍ଷିତୌ
ସର୍ବ୍ବାପି ଶତସନ୍ଧୀର ଇତି ଯସ୍ତସ୍ୟାଦଜନ୍ୟାତ୍ମଜଃ ।
ଧନ୍ୟୋମାମତିମନ୍ୟୁରିତ୍ୟତିବଳୀ ତସ୍ୟାପି ତେଜାଃ ସୁତଃ
ଶ୍ରୀଚଣ୍ଡୀହର ଇତ୍ୟଭୂନ୍ନରପତିଃ ସର୍ବୈରମାତ୍ୟୈଃ କୃତଃ ।୭।

ସେହି ରାଜବଂଶରେ ଜନମେଜୟଙ୍କର ଶତସନ୍ଧୀର ନାମକ ଏକ ପ୍ରସିଦ୍ଧ ପୁତ୍ର ଥିଲେ । ତାହାଙ୍କର ପୁତ୍ର ଅତି ବଳବାନ୍ ଅତିମନ୍ୟୁ ଅଟନ୍ତି । ଅତିମନ୍ୟୁଙ୍କର ଶ୍ରୀଚଣ୍ଡୀହର ନାମରେ ଗୋଟିଏ ମହାତେଜସ୍ୱୀ ପୁତ୍ର ଜାତ ହୋଇଥିଲେ । ମନ୍ତ୍ରୀମାନେ ରାଜ୍ୟ ଅରାଜକ ହେବାର ଦେଖି ସେହି ଶ୍ରୀଚଣ୍ଡୀହରଙ୍କୁ ରାଜପଦରେ ସ୍ଥାପନ କଲେ । ୭ ।

ଭୃତ୍ୟାମାତ୍ୟ ସୁହୃତ୍ ପ୍ରଜାଶ୍ରିତଜନଜ୍ଞାତୀଷୁ ବନ୍ଧୁଷ୍ୱଥା
ଯୋଗଂ ସମ୍ୟଗପାଲ୍ୟରାଜ୍ୟମଭୟଂ ନିଷ୍କଣ୍ଟକଂ କୃତ୍ୟ ଯଃ ।
ଭୂତୋଽନେକନରେନ୍ଦ୍ରଶେଖରମଣି ପ୍ରୋଦ୍ଭୂତବଂଶୁଚ୍ଛଟା-
ଲେକେ ଭ୍ରାହିତ ପାଦପଦ୍ମଯୁଗଳଃ ସର୍ବାବିଶ୍ୱାନନ୍ଦନଃ ।୮।

ଯାହାଙ୍କର ପାଦପଦ୍ମଯୁଗଳ ରାଜାମାନଙ୍କର ମସ୍ତକରେ ଥିବା ମଣିମାନଙ୍କର କିରଣରେ ସମୁଜ୍ଜ୍ୱଳ ହେଉଥିଲା, ଯେ ସମସ୍ତ ପୃଥିବୀର ଆନନ୍ଦ ବର୍ଦ୍ଧନ କରୁଥିଲେ, ସେହି ଶ୍ରୀଚଣ୍ଡୀହର ନାମକ ରାଜା, ଭୃତ୍ୟ, ଅମାତ୍ୟ, ମିତ୍ର, ପ୍ରଜା, ଆଶ୍ରିତଜନ, ଜ୍ଞାତି ଓ ଇଷ୍ଟବନ୍ଧୁମାନଙ୍କୁ ଯଥା ନିୟୋଗରେ ପରିପାଳନା କରି ଉଭୟ ରାଜ୍ୟକୁ ନିଷ୍କଣ୍ଟକ କଲେ । ୮ ।

ଶ୍ରୀମାନାଚନ୍ଦ୍ରରବିସ୍ତୀର୍ଣ୍ଣବସୁଧା ଚକ୍ରୈକରକ୍ଷାମଣି-
ର୍ମାନ୍ଧାତେବ ପୃଥୁପମୋ ଭରତବଦ୍ରାଜା ଜଗଜ୍ଜିତ୍ୱରଃ ।
ସୂର୍ଯ୍ୟାଚନ୍ଦ୍ରମସୋଃ ପ୍ରୈନଂ ଜଗତୋ ବୃଦ୍ଧୀପ୍ସୁନ୍ ରୋଦସୀ
ପୂର୍ବାଦ୍ରେଃସବିତେବ ସମୁଦଗାଦୁଦ୍ୟୋତକଃ କେଶରୀ ।୯।

ପୂର୍ବ ଦିଗଠାରୁ ସୂର୍ଯ୍ୟ ଉଦୟ ହେଲପରି ଶ୍ରୀଚନ୍ଦ୍ରିହରଙ୍କ ଠାରୁ ଶ୍ରୀମାନ୍ ଉଦ୍ୟୋତକେଶରୀନାମକ ପୁତ୍ର ଜନ୍ମଗ୍ରହଣ କଲେ । ସେହି ତେଜସ୍ୱୀ ଉଦ୍ୟୋତକେଶରୀ ସମୁଦ୍ର-ସୀମାବଳମ୍ବୀ ବସୁଧାଚକ୍ରର ରକ୍ଷାକାରୀ ହୋଇ ମାନ୍ଧାତା, ପୃଥୁ ଓ ଭରତଙ୍କ ସଦୃଶ ରାଜା ହେଲେ । ଏହାଙ୍କର ନିଜ ତେଜ ସୂର୍ଯ୍ୟ ଚନ୍ଦ୍ରଙ୍କ ତେଜ ସଦୃଶ ସମସ୍ତ ଦାର ଭବନମାନଙ୍କୁ ସମୁଜ୍ଜ୍ୱଳ କରୁଥିଲା ।୯।

ବାଲକ୍ରୀଡ଼ି ଭବେବ ତୁଙ୍ଗଭଟମଣ୍ଡିଳଂ ସିଂହଳଂ ଗୌଡ଼ଗୌଡ଼ୌ
ହୃଷ୍ଟେ ସକଳ ଯୋଧବୃନ୍ଦେ ଦେବଜନଘଣ୍ଟାଙ୍ଗଗଣଂ ଯୋ ବିଜିତ୍ୟ ।
ଉଦ୍ଧୃତ୍ୟ ପ୍ରୋନ୍ନିହ୍ୱଣୀପଦ୍ମଲୁ ଚନ୍ଦ୍ରନେନ ଭିନ୍ନଭସବାନ୍ତ କୁମ୍ଭେର୍ଯ୍ୟୋ
ବକ୍ଷଃ କୁର୍ବନ୍ନଶେଷାନବନତ ଶିରସୋଃକାସ୍ତୁ ଭୂର୍ବୀମଚୈଷୀତ୍ ।୧୦।

ସେହି ଉଦ୍ୟମଶୀଳ ରାଜା ଉଦ୍ୟୋତ କେଶରୀ ବାଳକମାନେ କ୍ରୀଡ଼ା କଲପରି ସମସ୍ତ ଶତ୍ରୁପକ୍ଷ ବୀରଙ୍କୁ ଜୟ କରିଥିଲେ ଏବଂ ସୁଶିକ୍ଷିତ ଯୋଦ୍ଧୃବୃନ୍ଦ ଓ ହସ୍ତିବୃନ୍ଦ ସହିତ ସିଂହଳ, ଗୌଡ଼ ଓ ଗୌଡ଼ ନୃପତିମାନଙ୍କୁ ଜୟ କରିଥିଲେ । ଅନନ୍ତର ମଧ୍ୟ ଉଚ୍ଚ ଦର୍ପଶାଳୀ ସେନାପତିମାନଙ୍କ ବ୍ୟୂହରଚନାଦ୍ୱାରା ପୃଥିବୀକୁ ଭାରାକ୍ରାନ୍ତ କରୁଥିବା ଅସଂଖ୍ୟ ରାଜାମାନଙ୍କୁ ନତମସ୍ତକ କରି ବସୁଧାକୁ ଜୟ କଲେ ।୧୦।

ଜାତା ଧନକ୍ଷୟସ୍ୟ ଦୁହିତା କୋଲାବତୀ ନାମତୋ
ଯାଂସୌ ଶ୍ରୀଭଗବତ୍ସ୍ୟ ମହଷୀ ଦୁର୍ଗେବ ଲକ୍ଷ୍ମୀରିବ ।
ଯସ୍ୟାଃ କୀର୍ତ୍ତନ ମୃଣ୍ମୟ ଧ୍ୱଜଚୟୋ ବାତ୍ୟାଭିରୂର୍ଦ୍ଧ୍ୱଂ ଗତୋ
ହସ୍ତାଭ୍ୟାଂ ଶଶିଲକ୍ଷ୍ମ ଲୋପ୍ତୁମିବରେ ସୋତ୍ସାହ ମୁଦ୍ଗଚ୍ଛତ । ୧୧ ।

ଉଦ୍ୟୋତ କେଶରୀଙ୍କର ମାତାଙ୍କ ନାମ କୋଲାବତୀ ଅଟେ ।
ସେ ସୂର୍ଯ୍ୟବଂଶର କନ୍ୟା ଏବଂ ଚନ୍ଦ୍ରବଂଶର ମହିଷୀ ଅଟନ୍ତି ।
ସେ ରୂପ ଗୁଣରେ ଦୁର୍ଗା ଓ ଲକ୍ଷ୍ମୀଙ୍କ ସଦୃଶ ଥିଲେ । ତାହାଙ୍କର
କୀର୍ତ୍ତିସମୂହ ଧ୍ୱଜତୁଲ୍ୟ ହୋଇ ପବନବଳରେ ଉପରକୁ
ଉଠିବାରୁ ଲୋକମାନେ ତାହା ଦେଖି ଭାବୁଥିଲେ, ଏ
ରାଣୀଙ୍କର କୀର୍ତ୍ତିସମୂହ ସ୍ୱହସ୍ତରେ ଚନ୍ଦ୍ରକଳଙ୍କ ଲୋପ କରିବ
ବୋଲି ଉତ୍ସାହରେ ଆକାଶକୁ ଉଡ଼ି ଯାଉଅଛି କି ? ୧୧ ।

ଶ୍ରୀମତ୍ ତ୍ର୍ୟମ୍ବକେଶ୍ୱରସ୍ୟ ପ୍ରଣତମଲଦ୍ରୁହଃ ସ୍ୱର୍ଗଦାତା ମୁକ୍ତିଦସ୍ୟ
ପ୍ରାସାଦାଂଶ୍ଚ ଲକ୍ଷ୍ମୀଗ୍ରସ୍ତରଶିରଥରଥ୍ୟ ବ୍ୟାକୃତ ସ୍ତୁତିଶୃଙ୍ଗାଗ୍ରଃ ।
ଏକାମ୍ରେ ସିଦ୍ଧିତୀର୍ଥେ ଚତୁରମରକୁଳୀକ୍ଷୁଣ୍ଣଶାଳା ସମେତଃ
କୋଲାବତ୍ୟା ତଦୃପଃ କ୍ଷିତମୁକୁଟମଣିଃ କାରିତଃ କୀର୍ତ୍ତିରାଜଃ ।୧୨

ନମସ୍କାର କରିବା ବ୍ୟକ୍ତିର ପାପହର୍ତ୍ତା ଓ ସ୍ୱର୍ଗ ଦାନ କରିବା
ବ୍ୟକ୍ତିର ମୁକ୍ତିଦାତା ଶ୍ରୀମାନ୍ ତ୍ର୍ୟମ୍ବକେଶ୍ୱର ମହାଦେବଙ୍କର ପ୍ରାସାଦକୁ
ଉଦ୍ୟୋତ କେଶରୀଙ୍କ ମାତା କୋଲାବତୀ ସିଦ୍ଧତୀର୍ଥ ଏକାମ୍ର
କ୍ଷେତ୍ରରେ ନିର୍ମାଣ କରାଇ ଦେଲେ । ଉକ୍ତ ପ୍ରାସାଦ
ଦେବଭବନ ସଦୃଶ ଚୁମ୍ବଗୋଷ୍ଠି କୁଲୀଯା ଓ ମନୋହର
ଶାଳାଦିରେ ଯୁକ୍ତ ହୋଇ ପୃଥିବୀର ମୁକୁଟ ପରି ଶୋଭା ଧାରଣ
କଲା । ଅତି ମଧ୍ୟ ଏହା ଆକାଶ ସ୍ପର୍ଶୀ ମନ୍ଦର ସୂର୍ଯ୍ୟ ଦେବଙ୍କର
ରଥମାର୍ଗରୋଧକ ପର୍ବତତୁଲ୍ୟ ବୋଧ ହେଲା ।

ଲୋକାଲୋକସମୁଦ୍ରସପ୍ତକଲସଦ୍ଦ୍ୱୀପସ୍ଥଲୀ-ବେଦିକା
ମଧ୍ୟ ପ୍ରାଂଶୁକମେରୁଲିଙ୍ଗମପରଂ ବ୍ରହ୍ମାଣ୍ଡ ହେମାଳୟଂ ।
ଗଙ୍ଗା ଭିଃ ସ୍ନପୟନ୍ନହର୍ନିଶମସୌ ଦେବସ୍ତ୍ରିଲୋକୀପତି-
ବ୍ରହ୍ମା ସ୍ତୌତି ଯଂ ଶିବଂ ସ ଭଗବାନ୍ ବ୍ରହ୍ମେଶ୍ୱରୋଽୟଂ ବଲ୍ଗୁଃ ।୧୩।

ଲୋକାଲୋକ ପର୍ବତ, ସପ୍ତସମୁଦ୍ର, ସପ୍ତଦ୍ୱୀପସ୍ଥଳୀ ଏମାନେ ବେଦିକା ଅର୍ଥାତ୍ ମୂଳାଧାର ଶକ୍ତି । ତାହାର ମଧ୍ୟବର୍ତ୍ତୀ ମେରୁପର୍ବତ ଉପରେ ବ୍ରହ୍ମାଣ୍ଡ-ହେମାଳୟ ଲିଙ୍ଗ ବିରାଜମାନ । ବ୍ରହ୍ମା ଅହର୍ନିଶ ତାହାଙ୍କୁ ଗଙ୍ଗା ଜଳରେ ସ୍ନାନ କରାଇ ପୂଜା କରୁଅଛନ୍ତି । ଏ ସେହି ତ୍ରିଲୋକାଧିପତି ଭଗବାନ୍ ଶମ୍ଭୁ ବ୍ରହ୍ମେଶ୍ୱର ମହାଦେବ ଅଟନ୍ତି । ୧୩ ।

ଉର୍ଦ୍ଧ୍ୱଭ୍ରାଜତ୍ କନକକଳସେ ଷ୍ଠୁଦଂଶୁଲ୍ଲସର୍ଚ୍ଚି-
ର୍ଦୀପ୍ତାଲୋକ ପ୍ରସରକୃତ୍ ଦିକ୍‌ଚକ୍ର ବାଳ ପ୍ରସାଦଃ ।
ପ୍ରାସାଦୋଽୟଂ ତ୍ରିଦଶ ଯୁବତୀ କାତସନ୍ଧ୍ୟା ପ୍ରଦୀପୋ
ମୂର୍ଦ୍ଧ୍ନ୍ୟାବଦ୍ଧୈଃ ସକଳ ଗଗନଂ ମଣ୍ଡୟନ୍ ଭକାସ୍ତି । ୧୪ ।

ଏହି ବ୍ରହ୍ମେଶ୍ୱର ଦେବଙ୍କ ପ୍ରାସାଦ ଉପରେ ଦେଦୀପ୍ୟମାନ ସୁବର୍ଣ୍ଣ କଳସ ଥିବା ହେତୁ ତାହା ତେଜପୁଞ୍ଜଦ୍ୱାରା ଦିଗମଣ୍ଡଳକୁ ଉଜ୍ଜ୍ୱଳ କରୁଅଛି । ସ୍ୱର୍ଗ ନାରୀଗଣ ପର୍ବତ ଶିଖରରେ ସନ୍ଧ୍ୟାପ୍ରଦୀପ ଜାଳିଲେ ଯେପରି ମନୋହର ଦେଖାଯାଏ, ଏହା ସମସ୍ତ ଗଗନକୁ ମଣ୍ଡିତ କରି ସେହିପରି ଶୋଭାବନ୍ତ ଦିଶୁଅଛି । ୧୪ ।

ରତ୍ନାଳଙ୍କୃତ ଭୂଷିତାଙ୍ଗ୍ୟ ସ୍ତ୍ରିୟା ଦେଦୀପ୍ୟମାନା ଦିବଃ
କ୍ରୀଡନ୍ତ୍ୟସ୍ତ୍ରକ୍ଷତଃ ସ୍ଥିରା ଇବ କୁଚଶ୍ରୋଣୀଭର ବ୍ୟାକୁଳାଃ ।
ସୂଦର୍ଯ୍ୟା ଃଷିତେକ୍ଷଣୀନିଚ୍ଚା ଇବ ଦୃଶାମନ୍ତଃ ପ୍ରବିଷ୍ଟା ନୃଣା
ମସ୍ମିନ୍ ଚଞ୍ଚଳଖଞ୍ଜନାଭନୟନା ଦତ୍ତାସ୍ତୁପ୍ତା ଦାରକାଃ ।୧୫।

ସେହି ଚୋଳାବନ୍ତୀ ରାଣୀ ଭକ୍ତ ବୃଦ୍ଧେଶ୍ୱରଙ୍କ ନିମିତ୍ତେ ତେତେଗୁଡ଼ିଏ ସୁନ୍ଦରୀ ପରିଚାରିକା ଦାନ କରିଥିଲେ । ସେହି ପରିଚାରିକାମାନେ ନାନାବିଧ ରତ୍ନାଭରଣ ଧାରଣ କରିଥିବାରୁ ଆକାଶରେ କ୍ରୀଡ଼ା କରୁଥିବା ଦେଦୀପ୍ୟମାନ ବିଜୁଳି ସ୍ଥିର ହୋଇପରି ଦେଖାଯାଉଥିଲେ । ସେମାନେ କୁଚ ଓ ନିତମ୍ବ ଭାରରେ ବ୍ୟାକୁଳିତା ହେଉଥିଲେ । ସେମାନଙ୍କର ନୟନ ଶୋଭା ନୃତ୍ୟ ଖଞ୍ଜରୀଟକୁ ଜିଣୁଥିଲା । ପୁଣି ସେ ରମଣୀଗଣ, ମନୁଷ୍ୟମାନଙ୍କର ଚକ୍ଷୁ ମଧ୍ୟରେ ଥିବା ଅଝି ଚିତ୍ରା ପରି ଦିଶୁଥିଲେ । ୧୫ ।

ବେଦ ବ୍ୟାକରଣାର୍ଥ ଶାସ୍ତ୍ରକବିତାତର୍କାଦି ବିଦ୍ୟାଧରଃ
ବୃତ୍ତେଣ୍ଡ୍ବାବଭଥ ପ୍ରସନ୍ନ ବିନୟୋଦ୍ ବୁଦ୍ଧିବିଶୁଦ୍ଧାନ୍ୱୟଃ ।
ତାମ୍ରାଧୀଶ୍ୱର ବଂଶଜାବନିଭୁଜାଂ ସଦ୍ ଯଶସ୍ତନ୍ତ୍ରତା
ଭଟ୍ଟଃ ଶ୍ରୀପୁରୁଷୋତ୍ତମଃ କବିବରସ୍ତେଷାଂ କୀର୍ତ୍ତିଦମାଂ ବର୍ଣ୍ଣନାଂ ।୧୬।

ବେଦ; ବ୍ୟାକରଣ, ଅର୍ଥଶାସ୍ତ୍ର, କବିତା, ତର୍କାଦି ବିଦ୍ୟା ନିପୁଣ, ତୀର୍ଥଙ୍କ ପରି ସତତ ପ୍ରସନ୍ନ; ବିନୟୀ, ସଦ୍‌ବୁଦ୍ଧିଶାଳୀ, ବିଶୁଦ୍ଧ କୁଳଜନ୍ମା, କବିବର ଶ୍ରୀପୁରୁଷୋତ୍ତମ ଭଟ୍ଟ ନିର୍ମଳ ଯଶ ବିସ୍ତାରକାରୀ ଚନ୍ଦ୍ରବଂଶୀୟ ରାଜାମାନଙ୍କର ଏହି ପ୍ରଶସ୍ତିକୁ ବର୍ଣ୍ଣନା କଲେ । ୧୬ ।

ସନଗବନ ସମୁଦ୍ରାମେଦନୀ ଯାବଦାସ୍ତେ
ତ୍ରିଭୁବନ ଜନନେତ୍ରେ ପୁଷ୍ପବନ୍ତୌ ଚ ଯାବତ୍ ।
ଅଣୀ-ଜଗଦୁପରସ୍ଥୋ ଯାବଦୌତ୍ତାନପାଦ-
ର୍ଜନ ବଦନ ସୁଧେୟଂ ତାବଦସ୍ତୁ ପ୍ରଶସ୍ତିଃ । ୧୭ ।

ପର୍ବତ ବନ ସମୁଦ୍ର ସହିତ ପୃଥିବୀ ଯେତେକାଳ ପର୍ଯ୍ୟନ୍ତ ଥିବ, ତ୍ରିଭୁବନ ଜନମାନଙ୍କ ନେତ୍ରରେ ଚନ୍ଦ୍ର ସୂର୍ଯ୍ୟ ଦୁହେଁ ଯେତେକାଳ ଦେଖା ଯାଉଥିବେ, ସମସ୍ତ ଜଗତର ଉପରେ ଧ୍ରୁବ ଯେତେକାଳ ପର୍ଯ୍ୟନ୍ତ ବାସ କରିଥିବେ, ତେତେକାଳ ପର୍ଯ୍ୟନ୍ତ ଏହି ଜନବଦନ-ସୁଧା ରୂପିଣୀ ପ୍ରଶସ୍ତି ରହିଥାଉ ।୧୭।

ପରମ ମାହେଶ୍ବର ମହାରାଜାଧିରାଜ
ସୋମବଂଶୋଦ୍ଭବ ଭୂପତି ଶ୍ରୀମଦୁଦ୍ୟୋତ କେଶରୀ ।
ରାଜଦେବସ୍ୟ ବିଜୟ ରାଜ୍ୟେ ସମ୍ବତ୍ । ୧୮ ।
ଫାଲ୍ଗୁନ ଶୁ ଦି ୩ ସୂତ୍ରଧାର ରାସ୍ତୁଃ ।

ପରମଶୈବ ମହାରାଜାଧିରାଜ ସୋମବଂଶୋଦ୍ଭବ ରାଜା ଶ୍ରୀମାନ୍ ଉଦ୍ୟୋତ କେଶରୀ ରାଜଦେବଙ୍କ ବିଜୟ ଶୁଭରାଜ୍ୟ ୧୮ ସମ୍ବତ୍ସର ଫାଲ୍ଗୁନ ଶୁକ୍ଳ ୩ ଦିନେ ଏ ପ୍ରଶସ୍ତି ବର୍ଣ୍ଣିତ ହେଲା । ୧୮ ।

---

## ସାରମର୍ମ

ଚନ୍ଦ୍ରବଂଶୀୟ ରାଜା ଶ୍ରୀଜନମେଜୟ ଉତ୍କଳଦେଶ ରାଜାଙ୍କୁ କୁନ୍ତ ପ୍ରହାରରେ ବିନାଶ କରି ସେଠାରେ ରାଜା ହେଲେ । ତଦନନ୍ତର ତାଙ୍କ ପୁତ୍ର ଦୀର୍ଘରବ ରାଜତ୍ୱ କଲେ । ଦୀର୍ଘରବଙ୍କ ପରେ ତାଙ୍କ ପୁତ୍ର ଅପବାର ରାଜା ହେଲେ । ସେ ଅପୁତ୍ରିକ ଅବସ୍ଥାରେ ମାନବଲୀଳା ସମ୍ବରଣ କରିବାରୁ ଜନମେଜୟଙ୍କ ବଂଶଧର ବିଚିତ୍ରବୀର ଉତ୍କଳଦେଶର ରାଜା ହେଲେ । ତାଙ୍କ ପୁତ୍ର ଅଭିମନ୍ୟୁ, ଅଭିମନ୍ୟୁଙ୍କ ପୁତ୍ର ଚଣ୍ଡୀହର ଏବଂ ଚଣ୍ଡୀହରଙ୍କ ପୁତ୍ର ଉଦ୍ୟୋତକେଶରୀ ଅଟନ୍ତି । ସେହି ଉଦ୍ୟୋତକେଶରୀ ସିଂହଳ, ଚୈଡ଼ ଓ ଗୌଡ଼ ଜୟ କରିଥିଲେ । ତାଙ୍କ ମାତା କୋଲାବତୀ ସୂର୍ଯ୍ୟବଂଶୀୟା କନ୍ୟା ଓ ଚନ୍ଦ୍ରବଂଶୀୟା ରାଣୀ ଅଟନ୍ତି । ସେ ଏକାମ୍ର ବନରେ ବ୍ରହ୍ମେଶ୍ୱର ମନ୍ଦିର ନିର୍ମାଣ କରାଇଥିଲେ । ଉଦ୍ୟୋତକେଶରୀଙ୍କର ରାଜତ୍ୱର ୧୮ ସମ୍ବତ୍ସର ଫାଲ୍ଗୁନ ଶୁକ୍ଳ ତୃତୀୟାରେ ଶ୍ରୀପୁରୁଷୋତ୍ତମ ଭଟ୍ଟ ଏହି ପ୍ରଶସ୍ତିକୁ ରଚନା କରିଥିଲେ । ୧୯ ।

ସମାପ୍ତ ।



କଟକ ଦତ୍ତପ୍ରେସରେ ଶ୍ରୀ ହରମୋହନ ଦତ୍ତଙ୍କ ଦ୍ୱାରା
ମେହିନଯନ୍ତ୍ରେ ମୁଦ୍ରିତ । ୧୯୩୬ ।

# ବିଜ୍ଞାପନ ।

ନିମ୍ନ ଲିଖିତ ପୁସ୍ତକମାନ ନିମ୍ନ ଠିକଣାରେ ବିକ୍ରୟ ନିମିତ୍ତ ସଞ୍ଚିତ ଅଛି । ଅଗ୍ରିମ ସହ ଅର୍ଡ଼ର ପଠାନ୍ତୁ ।

| | | |
|---|---|---|
| ଏକାମ୍ର ପୁରାଣ | ( ସଂସ୍କୃତ ଶ୍ଳୋକ ) | ଟ ୦ ୳ |
| ଏକାମ୍ର ଚନ୍ଦ୍ରିକା | ( ,, ) | ଟ ୦ ୳ |
| ସ୍ୱର୍ଣ୍ଣାଦ୍ରି ମହୋଦୟ | ( ,, ) | ଟ ୦ ୳ |
| କପିଳ ସଂହିତା | ( ,, ) | ଟ ୦ ।୵ |
| ,, | ( ଓଡ଼ିଆ ପଦ୍ୟ ) | ଟ ୦ ୷ |
| ଅନନ୍ତ ବାସୁଦେବଙ୍କ ଶିଳାଲିପି | ... | ଟ ୦ ୵ |
| ମେଘେଶ୍ୱର ଶିଳାଲିପି | ... | ଟ ୦ ୵ |
| ବ୍ରହ୍ମେଶ୍ୱର ଶିଳାଲିପି | ... | ଟ ୦ ୵ |
| ଶିବ ରାସକ୍ରୀଡ଼ା ... | ... | ଟ ୦ / |
| ଭୁବନେଶ୍ୱର | ( ଚିନ୍ତାମଣି ଆଚାର୍ଯ୍ୟ ) ... | ଟ ୧୯ |
| ,, | ( ସୋମନାଥ ମହାନ୍ତି ) ... | ଟ ୦ ୵ |
| Bhubaneshwar Temple | ... | ଟ ୦ ୳ |
| Bhubaneshwar | ( Eng ) ... | ଟ ୦ । |
| ଭୁବନେଶ୍ୱର | ( ବଙ୍ଗଳା ) ... | ଟ ୦ । |

ପ୍ରାପ୍ତିସ୍ଥାନ :—

**ଶ୍ରୀ ରାଧାରମଣ-ପୁସ୍ତକାଳୟ**

ବାଲୁବଜାର, କଟକ ।

ଟପୋ:ଗ୍ରନ୍ଥମାଟେବ୍ଲିକ ।